ନବସାକ୍ଷର ସାହିତ୍ୟମାଳା

# ସିଏ ବିଚରା

ଜୈନେନ୍ଦ୍ର କୁମାର ଜୈନ

ଅନୁବାଦ
**କୃଷ୍ଣା ମହାନ୍ତି**

ଚିତ୍ର
ଏମ୍. ଏ. ଯୋମରାଜ



**ନ୍ୟାସ୍‌ନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ**

# ସିଏ ବିଚରା

ଅତି ଘନ ଜଙ୍ଗଲ ଭିତରେ ସାପଟିଏ ରହୁଥିଲା । ସାପଟି ଅତି ଭୟଙ୍କର ଓ ଦେଖିବାକୁ ଭାରି ସୁନ୍ଦର ଥିଲା । ତାକୁ ଦେଖି ବଣର ଅନ୍ୟ ଜୀବଜନ୍ତୁ ମାନଙ୍କ ମନରେ ଏକା ସାଙ୍ଗରେ ଭୟ ଓ ମୋହ ଜାତ ହେଉଥିଲା । ତାର ଚିକ୍କଣ କଳା ଦେହରେ ସତେ କି କାରୁକାର୍ଯ୍ୟ ହୋଇଥିଲା ଏବଂ ତା' ଫଣାରେ ମଣି ଖଂଜା ହୋଇଥିଲା । ଯଦିଓ ସେ ଥିଲା ଗୋଟିଏ ଅତି ବିଷଧର ସାପ, ତେବେ ତା' ଅନ୍ତରଟା ଭାରି ଭଲ ଥିଲା । ତାର କ୍ରୋଧ ସମୟର ଗରମ ନିଶ୍ୱାସରେ ଆଖପାଖର ଘାସ ଜଳି ଯାଉଥିଲା । ତେବେ ପ୍ରାୟ ସେ ନିଜ ଜାଗାରେ ଏକା ଚୁପ୍‌ଚାପ ପଡ଼ି ରହୁଥିଲା । ସେ





ସମୟରେ ପୋକ ଜୋକ ବି ବିନା ଭୟରେ ତା' ଦେହରେ ଖେଳି ବୁଲୁଥିଲେ ।

ହଠାତ୍ ଦିନେ ଗୋଟିଏ ଦେବ ଶିଶୁ ସେ ବଣରେ ଆସି ପହଞ୍ଚିଲା । ସେ ଆନନ୍ଦରେ ଖେଳି-ଖେଳି କିଳିକିଳା ରବ କରି ଚାଲିଥାଏ । ତାର ଖୁସି ଭରା ମନରେ ଯେପରି ତିଳେ ହେଲେ ବି ଶଙ୍କା ନଥାଏ । ପିଲାଟି ତାର ଅତୁଳନୀୟ ରୂପ ନେଇ ହାତରେ



ବଇଁଶିଟିଏ ଧରି ବାଡ଼ି ପରି ବୁଲାଇ ଚାଲିଥାଏ । ଏଇ ଭୟଙ୍କର ବଣରେ ପିଲାଟି କେଜାଣି କୁଆଡୁ ଆସି କୁଆଡ଼େ ଯାଉଥିଲା !!

ପିଲାଟି ଖେଳ ପାଳିଆ ହେଇ ଦୌଡୁ ଦୌଡୁ ତା' ଗୋଡ଼ ସାପ ଲାଞ୍ଜୀ ଉପରେ ପଡ଼ିଗଲା । ସାପ ସାଙ୍ଗେ ସାଙ୍ଗେ ଫଣା ଟେକି ଶିଶୁଟି ଦୁଇପାଦ ଯାଇଛି କି ନାହିଁ ତା' ଦେହରେ ଚୋଟ ପକାଇଲା ।

ଚାହୁଁ ଚାହୁଁ ସାପର ବିଷ ପିଲାଟି ଦେହରେ ଚରିଗଲା ଓ ସେ ତଳେ ପଡ଼ିଗଲା । ଆଖି ପିଛୁଳାକରେ ତା' ଦେହ ଥଣ୍ଡା ହୋଇଗଲା ।ତା' ମୁହଁରୁ ବେଦନାର କୌଣସି ଶବ୍ଦ ବି ବାହାରି ପାରିଲା ନାହିଁ। ତା' ମୁହଁ ଟିକିଏ ବି ମଳିନ ପଡ଼ି ନଥିଲା । ସତେ ଅବା ହସ ହସ ମୁହଁରେ ସେ ସେଠି ଲୋଟି ପଡ଼ିଲା ।

ପଡ଼ିଥିବା ଶିଶୁଟିକୁ ଚାହିଁ ଦେଇ ସାପ ମନରେ ଖୁବ୍ ଦୁଃଖ ହେଲା । ଶିଶୁଟିର ସୁନ୍ଦର ରୂପ ସାପର ହୃଦୟକୁ ବିଦାରି ପକାଇଲା । ଆଘାତ କରିବା ବାଲା ପ୍ରତି ବିରାଗ ବା ଅଭିଯୋଗର ଚିହ୍ନ ପିଲାଟିର ଚେହେରାରେ ଆଦୌ ନଥିଲା । ସାପ ଅନ୍ତର ଭିତରେ ଅତି ଦୁଃଖିତ ହୋଇ ପଡ଼ିଲା । ସେ ପିଲାଟିର ଚାରିପଟେ କୁଣ୍ଡଳୀ



ପକାଇ ବସି, ତା' ଦେହକୁ ପହରା ଦେଲା । ଦିନ ବିତିଗଲା, ରାତି ବି ବିତିଗଲା । କିନ୍ତୁ ସାପ ଯେପରି ତାର ବୋଧ ଶକ୍ତି ହରାଇ ବସିଥିଲା । ସେ ସେହିପରି ପିଲାଟିର ଦେହକୁ କୁଣ୍ଡଳୀରେ ଘେରି ପଡ଼ି ରହିଲା ।

କ୍ରମେ ପିଲାଟିର ଦେହ ସଢ଼ିବାକୁ ଆରମ୍ଭ କଲା । ଏବେ ସାପ ବୁଝି ପାରିଲା ଯେ ପିଲାଟିର ଆତ୍ମା ତା' ଶରୀରରେ ନାହିଁ । ଦେହଟିକୁ ଛାଡ଼ି ସେ ସେଠୁ ଚାଲିଗଲା । ତା'ପରେ ସେ ଅତି ବ୍ୟାକୁଳ ଭାବରେ ପ୍ରାର୍ଥନା କଲା--"ହେ ମୋର ପରମାତ୍ମା ! ମୁଁ କ'ଣ କରିବି? ମତେ କ୍ରୋଧ ଗ୍ରାସି ଯାଉଛି, କିନ୍ତୁ ମୁଁ କାହାରି ଅମଙ୍ଗଳ ଚାହେଁ ନାହିଁ । ତୁ ମୋ'ଥିରେ ଏ କି ଭଳି ବିଷ ରଖି



ଦେଇଛୁ ଯେ ମୁଁ ଯାହାଦେହରେ ମୁହଁ ଲଗାଉଛି ତା'ର ଜୀବନ ଚାଲି ଯାଉଛି। ଏଇ ଦେବତା ଭଳି ପିଲାଟିର ଅମଙ୍ଗଳ ମୁଁ ତ ତିଳେ ହେଲେ ବି ସହି ପାରୁନାହିଁ? ହେ ମୋର ପରମାତ୍ମା, ତୋର ଏ ବିଷ ତୁ ମୋ'ଠାରୁ ନେଇ ଯା ! ହାୟ ରେ ବିଧାତା, କାହିଁକି ଏତିକି ବି ମୋର ଅଧୀନରେ ନାହିଁ ଯେ ଯଦି ମୁଁ ନିଜକୁ କ୍ରୋଧରୁ ରକ୍ଷା ନକରି ପାରୁଛି ତ କାହାରି ଜୀବନ ନେବାରୁ ତ ରକ୍ଷା ପାଏ। କିନ୍ତୁ ତୁ ମୋ' ମୁହଁରେ ମହାକାଳ ଭରି ଦେଇଛୁ। ତୁ ଏ ବିଷ ମୋ'ଠାରୁ କାଢ଼ି ନେ !''

ତା' ପରଦିନ ପରମାତ୍ମା ପଠାଇଥିବା ଏକ ସାପୁଆ କେଳା ଆସି ପହଞ୍ଚିଗଲା। ତା' ହାତରେ ମୁଣା ଥିଲା। ସେ ବସି ତା' ତୁମ୍ୱା ବଇଁଶୀରେ ସ୍ୱର ତୋଳିଲା। ସାପ ସେ ସ୍ୱର ଲହରୀରେ ମୋହିତ ହୋଇ ଆସି ସାପୁଆ କେଳା ସାମନାରେ ଛିଡ଼ା ହୋଇଗଲା। କେଳାର ବାଜା ସାଙ୍ଗେ ସାଙ୍ଗେ ସାପ ବି ଫଣା ତୋଳି ମନ୍ତ୍ର ମୁଗ୍ଧ ହୋଇ ଢ଼ଳୁଥାଏ। କ୍ରମେ ସାପ ତାର ଚେତନା



ହରାଇ ନିଜକୁ ସମର୍ପିବାକୁ ଲାଗିଲା। କେଳା ପ୍ରେମଭାବ ଜଣାଇ ସାପକୁ ପୂରାପୁରି କାବୁ କରିନେଲା।

ସାପୁଆ କେଳା ତା' ବିଷ ଦାନ୍ତକୁ କାଢ଼ିଲା ବେଳକୁ ସାପର ପ୍ରାୟ ବେହୋସ ଅବସ୍ଥା। ବେଦନା ଅନୁଭବ କରୁଥିଲେ ମଧ୍ୟ ପୂରା ବେହୋସ ହେବା ଯାଏ ସାପୁଆ କେଳା ପ୍ରତି କୃତଜ୍ଞତାରେ ତା' ମନ ପୂରି ଉଠିଥାଏ। ପୀଡ଼ା ଦେଲେ ମଧ୍ୟ ଲୋକଟି ତାର ବିଷକୁ ବାହାର କରି ଦେଇଛି ବୋଲି ସେ ତା' ପାଖରେ କୃତଜ୍ଞ ବୋଧ କଲା। ଶେଷରେ ସାପକୁ ପୂରା ବେହୋସ କରି ମୁଣାରେ



ପୂରାଇ କେଳା ସହର ଆଡ଼କୁ ଚାଲିଲା ।

ଜ୍ଞାନ ଫେରିଲା ପରେ ସାପ ଦେଖିଲା ତା' ଚାରିପାଖ ଅନ୍ଧାର । ସେ ଅଣ୍ଡାଳି ଅନୁଭବ କଲା ଯେ ଚାରିଆଡ଼ ବନ୍ଦ, ବାହାରକୁ ରାସ୍ତା ନାହିଁ। ଦେହରେ ଜୋର ଲଗାଇ ସେ କେଉଁଠି ହେଲେ ବାଟ ପାଇବାକୁ ଚେଷ୍ଟା କଲା । କିନ୍ତୁ ଧକ୍କା ଖାଇ ଦେହ ଫେରି ଆସିବାରୁ ସେ ଜାଣିଲା ଯେ ରାସ୍ତା ପୂରାପୂରି ବନ୍ଦ । ଉପରେ ନୀଳ ଆକାଶ ନାହିଁ, ତାର ଆଗ ଓ ପଛ ଚାରିଆଡ଼ ଅନ୍ଧାର ହିଁ ଅନ୍ଧାର । ତାକୁ ଚାରି ପଟୁ ଯେଉଁ ବସ୍ତୁଟି ଘେରି ରଖିଛି, ତାକୁ ସେ ଜାଣେନା,



ତେବେ ସେ ବେଶ ମଜବୁତ ଏ କଥା ବୁଝା ଯାଉଛି। ନିର୍ଜୀବ ପଦାର୍ଥରେ ତିଆରି ଜିନିଷଟି ସହିତ ତାର ହେଳ ମେଳ ହେଇ ପାରିବ ନାହିଁଏ କଥା ସେ ବୁଝି ପାରିଲା।

ମୁଣାଟି ଧରି ସାପୁଆ କେଳା ରୋଜଗାର ଉଦ୍ଦେଶ୍ୟରେ ସହର ଚାଲିଲା। ସେଠି ସେ ତୁମ୍ବା ବଜାଇ, ସାପ ଖେଳ ଦେଖାଇ ଟିକିଏ ନାଁ, କେଇଟା ପଇସା ଓ ପେଟକୁ ଗଣ୍ଡେ ଦାନା ପାଇଯିବ। ପିଲାମାନେ ସାପ ଖେଳ ଦେଖିବେ ଓ ନିଜ ମା' ଖୁଡ଼ିଙ୍କ ଠାରୁ ମାଗି କିଛି ଖାଇବା ଆଣି ସାପୁଆ କେଳାକୁ ଦେବେ। ସାପକୁ ସେମାନେ ବଡ଼ ସରାଗରେ ଦେଖିବେ। ସାପକୁ ଡରିବେ, ଏଣେ ପାଖରେ କେଳା ଥିବାରୁ ସେତେ ବେଶି ଡର ମାଡ଼ିବ ନାହିଁ। ଟେକା, ପଥର ପକାଇ ସାପକୁ ଚିଡ଼ାଇବାର ଚେଷ୍ଟା ବି କରି ପାରନ୍ତି। କେହି କେହି ଆସି ଟିକିଏ ଛୁଇଁ ବି ଦେଇ ପାରନ୍ତି। ଏଇ ସାପର ଫଣା ପିଲାଙ୍କୁ ବଡ଼ ବିଚିତ୍ର ଲାଗିବ। ଚିତ୍ରରେ ଥିବା ସାପର ଫଣାକୁ ଦେଖି ତାଙ୍କର ଯେପରି ବିସ୍ମୟ ହୁଏ, ତା' ଠାରୁ କାହିଁ ଅଧିକ ବିସ୍ମୟ ପ୍ରକୃତ ସାପର ଫଣାକୁ ଦେଖିଲେ ଲାଗିବ। ପ୍ରକୃତ ଫଣାକୁ ଦେଖି ମନରେ ବିଶ୍ୱାସ ମଧ୍ୟ ଜନ୍ମିବ, ଏଣେ ଚିତ୍ରରେ ସାପକୁ ଯେପରି ନିର୍ଭୟରେ ଦେଖନ୍ତି, ସେହିପରି ନିର୍ଭୟରେ ସାପୁଆ କେଳାର ସାପକୁ ବି ଦେଖିବେ।

ଖେଳ ଆରମ୍ଭ ହେଲା । ପେଡ଼ିର ଢ଼ାଙ୍କୁଣି ଖୋଲିଲା । ସାପର ମନେ ହେଲା ତା' ମୁଣ୍ଡ ପାଖ ଫରଚା ଦିଶୁଛି । ସେ ଫଣା ଟେକି ଉପରକୁ ଉଠିଲା । କିନ୍ତୁ ଦେଖେ ତ ତା' ସାମନାରେ ତାର



ଉପକାରୀ ବନ୍ଧୁ ତୁମ୍ଵା ବଜାଉଛି । ସେ ତା' ଫଣାକୁ ଟେକି ହଲି ହଲି ମୁଗ୍ଧ ହୋଇ ନିଜର କୃତଜ୍ଞତା ଜଣାଇବାକୁ ଲାଗିଲା । ତୁମ୍ଵାର ସ୍ୱର ଶୁଣୁ ଶୁଣୁ ସେ ତାର ଉପକାରୀ ବନ୍ଧୁ ସାମନାରେ ଫଣା ଟେକି ଛିଡ଼ା ହୋଇ ରହିଲା ।

ସେତିକି ବେଳେ କେଳା ସାପକୁ ହାତରେ ଧରି, ପେଡ଼ିରୁ ବାହାର କରି ଭୂଇଁରେ ଛାଡ଼ି ଦେଲା । ସାପ ଦେଖିଲା ଅନେକ ଲୋକ ତାକୁ ଘେରି ଠିଆ ହୋଇ ରହିଛନ୍ତି । ସେମାନଙ୍କ ଭିତରେ ଅନେକ ଛୋଟ ପିଲା ବି ଅଛନ୍ତି । ସେମାନେ ସମସ୍ତେ ତା' ଠାରୁ କ'ଣ ଚାହାନ୍ତି ସେ ବୁଝି ପାରିଲା ନାହିଁ। ସେ ତ ନିଜେ ଗୋଟିଏ ହିଂସ୍ର, କାମୁଡ଼ା ପ୍ରାଣୀ, ଏମାନେ ସମସ୍ତେ ତାକୁ ନଡରି ଏତେ ପାଖରେ କି ଆଶାରେ ଛିଡ଼ା ହୋଇଛନ୍ତି !

ହଠାତ୍ ବାହାରକୁ ଭୂଇଁ ଉପରକୁ ଆସି ସେ ସଂକୋଚରେ ତଳେ ପଡ଼ିଗଲା । ଦେହକୁ ଗୁଡ଼ାଇ, ମୁହଁକୁ ଢାକି, ନିଜ ଦେହରେ ଲୁଚାଇ ସେ ଲୋକଙ୍କ ମଝିରେ ପଡ଼ି ରହିଲା ।

ଜମିଥିବା ଲୋକଙ୍କୁ ତାର ଚକଚକିଆ ଚିତ୍ରିତ ଦେହଟି ଭାରି ସୁନ୍ଦର ଦିଶିଲା । ବୋଧହୁଏ ଏତେ ବଡ଼ ସାପ ସେମାନେ କେବେ ଦେଖି ନଥିଲେ । ବଣର ରଜା ଏଡ଼େ ଭୟଙ୍କର ସାପକୁ ତାଙ୍କ ଆଗରେ ମୁହଁ ମାଡ଼ି ପଡ଼ିଥିବାର ଦେଖି ଲୋକ ବଡ଼ ଗର୍ବ ଅନୁଭବ କରୁଥା'ନ୍ତି ।

ଜଣେ କହିଲା - ''ଏ କେଳା, ଉଠା ତାକୁ।''
କେଳା କହିଲା - ''ବାବୁ, ଏ ନାଗ ନୂଆ ଧରା ହେଇ ଆସିଛି।
ସଂଙ୍କୋଚ କରୁଛି।''



ଗୋଟିଏ ପିଲା କହିଲା - "ତାକୁ ଟିକିଏ ଚଲେଇ କରି ଦେଖାଅ ନା"।

କେଳା କହିଲା - "ହଉ ବାବୁ"।

ଏହା କହି କେଳା ସାପ ଲାଙ୍ଗୁଡ଼ରେ ବେଶ୍ ଜୋରରେ ଗୋଟିଏ ଚାପୁଡ଼ା ପକାଇଲା।

ଗଡ଼େଇ ହୋଇ ବସି ସାପ ତାର ଅଧା ଖୋଲା ଆଖିରେ ତା' ଆଖ ପାଖରେ ଜମିଥିବା ଲୋକଙ୍କୁ ଚାହିଁ ତାଙ୍କ ପ୍ରତି ତା' ମନରେ ପ୍ରେମ ଓ କରୁଣାର ଭାବ ଜାଗୁଥିଲା। ଦୁଇ ଗୋଡ଼ରେ ଗଛଭଳି ଠିଆ ହୋଇ ଚାଲୁଥିବା ମଣିଷ ନାମକ ଜନ୍ତୁକୁ ସେ ତା' ବଣରେ ଅଧିକ ଦେଖି ନଥିଲା। ଏମାନଙ୍କୁ ଦେଖି ଆରମ୍ଭରେ ତ ସେ ଡରି ଯାଇଥିଲା। କିନ୍ତୁ ଯେତେବେଳେ ସିଏ ଜାଣି ପାରିଲା ଯେ ଏମାନେ ଦୁର୍ବଳ ପ୍ରାଣୀ, ତାର ଗୋଟିଏ ଚୋଟ ବି ସହି



ପାରିବେ ନାହିଁ, ତା' ମନରେ ଡର ବଦଳରେ କରୁଣା ଜନ୍ମିଲା। ଏଇ ବିଚିତ୍ର ସ୍ୱଳ୍ପପ୍ରାଣ ମଣିଷଙ୍କ ଭିଡ଼ ତା' ଚାରିପଟେ ଜମିଥିବାର

ଦେଖି ତାକୁ ଅଡୁଆ ଲାଗିଲା । ମଣିଷ ମାନଙ୍କର ଏତେ କୌତୁହଳ ତାକୁ ଭଲ ଲାଗିଲା ନାହିଁ। ତେବେ ତାଙ୍କର ସ୍ନେହ ଭାବ ତାକୁ ଭଲ ଲାଗିଲା । କିନ୍ତୁ କିଛି ସମୟ ପରେ ଏତେ ମଣିଷଙ୍କର ଦୃଷ୍ଟିର କେନ୍ଦ୍ର ହୋଇ ସଂକୁଚିତ ଭାବରେ ପଡ଼ି ରହିବା ମଧ୍ୟ ତା' ପାଇଁ କଷ୍ଟକର ହୋଇ ଉଠିଲା । ସେ ଏଇ ଅଜଣା ମଣିଷଙ୍କ ମଝିରୁ ଆପଣାର ଜାଗା ବଣକୁ ପଳେଇ ଯିବାକୁ ଚାହୁଁଥିଲା । ମାତ୍ର ସେ ବାଟ ପା'ନ୍ତା କୁଆଡୁ?

ଠିକ୍ ସେତିକି ବେଳେ ଲାଞ୍ଜରେ ଚାପୁଡ଼ା ଖାଇ ସେ ଫଣାକୁ ମେଲି ଟେକି ଧରିଲା ଓ କ୍ରମେ ଅଧିକ ମେଲିବାକୁ ଲାଗିଲା । ତାକୁ ଆଘାତ କରିଥିବା ଲୋକ ଆଡ଼କୁ ବୁଲି କରି ଚାହିଁଲା । କିନ୍ତୁ ସେ ସେତେବେଳକୁ ମୁହଁରେ ତୁମ୍ବା ଧରି ବଜାଉଥିଲା । ସାପ ଫଣା ମେଲି ଛିଡ଼ା ହେଇ ରହିଲା । ତାର ସେଇ ମେଲା ଫଣାର ସୌନ୍ଦର୍ଯ୍ୟରେ ଲୋକଙ୍କ ଆଖି ଖୋସି ହୋଇଗଲା । ସେମାନେ କେବଳ ତାର ସୌନ୍ଦର୍ଯ୍ୟରୁ ଆନନ୍ଦ ପାଉଥିଲେ, ସେଥିରେ ଡର ନଥିଲା । ସାପ ତା' ଫଣାକୁ ବୁଲାଇ ଚାରିଆଡ଼କୁ ଚାହିଁଲା । ସେ ଦେଖିଲା ତା' ମନରେ ରାଗ ନାହିଁ। ଏଇ ମଣିଷ ମାନଙ୍କ ଚେହେରାରେ ସେ କୌତୁହଳ ଦେଖିଲା । ତାକୁ ଦେଖି ଏବେ ବି ପିଲାମାନେ ଡରୁ ନାହାନ୍ତି । ସେ କ୍ରୋଧ ଭରା ଆଖିରେ ଅନାଇଲା । ରାଗରେ ଫଁ ଫଁ ହୋଇ ନିଶ୍ୱାସ ଛାଡ଼ିଲା । ଲହ ଲହ ହେଇ ତା'

ଜିଭ ପଦାକୁ ବାହାରି ଆସିଲା । ସତେ ଅବା କଳା ବିଜୁଳିର ରେଖା! ଏଥିରେ କେହି ଡ଼ରିଲେ ଡରିଥିବେ, ମାତ୍ର ତାଙ୍କର ଆଗ୍ରହ ଯେପରି ଆହୁରି ବଢ଼ିଗଲା । ସେମାନେ ଆହୁଁରି ସନ୍ତୋଷ ଓ ଆନନ୍ଦର ସହିତ ତାର କରାମତିକୁ ଦେଖିବାକୁ ଲାଗିଲେ ।

ନିଜ ଫଣାକୁ ମେଲାଇବାର ଶକ୍ତି ସେ ସାପର କେତେ ଥିଲା କେଜାଣି! ସେ ଫଣା ମେଲା ହୋଇ ଚାଲିଥାଏ । ଶେଷରେ ସେ ପାରସନାଥଙ୍କ ମୂର୍ତ୍ତିର ମୁଣ୍ଡକୁ ଘୋଡ଼ାଇ ରହିଥିବା ନାଗଫଣା ଭଳି ଉଠିବାକୁ ଲାଗିଲା । ତାର ବାକି ଦେହରେ ମଧ୍ୟ ଚେତନାର ଲହରୀ ଖେଳିଗଲା, ଜୀବନ୍ତ ବିଜୁଳିର ତାର ଭଳି ତା' ଦେହ ଜଳିଲା ଭଳି ଦେଖାଗଲା । ସେ ଚାରିଆଡ଼କୁ ଚାହିଁଲା ।

ମାତ୍ର ଲୋକଙ୍କ ଆଗ୍ରହ ଅଧିକ ବଢ଼ିଲା ସିନା ଭୟର ଚିହ୍ନ ବି ଦିଶିଲା ନାହିଁ ।



ଏଥର ସାପ ତା' ଫଣାକୁ ଟେକି ଖୁବ୍ ଜୋରରେ ଭୂଇଁକି ଚୋଟ ପକାଇଲା । ସେଥିରେ ଆଖ ପାଖ ଖଣ୍ଡେ ବାଟ ଧୂଳି ଉଡ଼ିଗଲା ଓ ଚୋଟ ପଡ଼ିବା ଜାଗାରେ ଗୋଟାଏ ଗାତ ହୋଇଗଲା ।

ଏବେ ଲୋକଙ୍କ ଘେର କିଛିବାଟ ପଛକୁ ହଟିଗଲା । କିନ୍ତୁ ଭୟ ବଦଳରେ ଆକର୍ଷଣ ଆହୁରି ବଢ଼ିଗଲା ।



ସାପୁଆ କେଳା ନିଜ ଜାଗାରେ ବସି ସ୍ନେହ ଭରା ଗଳାରେ କହିଲା - "ବାସ୍ ବଛା ବାସ୍ ଖୁବ୍ ହେଲା।" ସେ ହାତ ବଢ଼ାଇ ସାପ ଦେହରେ ହାତ ବୁଲାଇବାକୁ ଚାହିଁଲା। ସାପ ରାଗରେ ଫଣା ଟେକି ତା' ହାତକୁ ମାରିବାକୁ ଝପଟିଗଲା। କେଳା ଓଠକୁ ବଢ଼ାଇ ଚୁ ଚୁ ଶବ୍ଦ କରି ସତେ ଅବା ତାକୁ ଆଦରରେ ଚୁମା ଦେବାକୁ ଚାହୁଁଥିଲା !



ନିଷ୍ଫଳ ରାଗରେ ସାପ ଭିତରେ ଭିତରେ ଜଳି ଉଠିଲା । ତାର ମନେ ହେଲା ଲୋକେ ତାକୁ ଡରିବା ନିରର୍ଥକ ମନେ କରି ସାରିଥିଲେ । ପୁଣି ଏବେ ତାର ତିରସ୍କାରକୁ ବି ଉପଭୋଗ କରୁଛନ୍ତି । ମୋର ତେଜକୁ ଏମାନେ ସୌନ୍ଦର୍ଯ୍ୟ ବୋଲି ମନେ କରୁଛନ୍ତି । ମୋର କ୍ରୋଧ ଏମାନଙ୍କୁ ମନ ମତାଣିଆ ଲାଗୁଛି । ମୋର ଅପମାନରେ ଏମାନେ ଖୁସି ହେଉଛନ୍ତି!!!

କେଳା ଧୀରେ ଧୀରେ ତା' ଦେହରେ ହାତ ବୁଲାଇ ବୁଲାଇ କହିଲା - "ଆ ବଛା ଆ, ସେତିକି ହେଇଥାଉ ।"



ସାପ ଖୁବ୍ ଜୋରରେ କେଳା ହାତରେ ଦାନ୍ତ ବସେଇ ଦେଲା । କେଳା ତା' ହାତରୁ ବାହାରୁଥିବା ରକ୍ତକୁ ଚାହିଁ ହସିଲା । ରକ୍ତକୁ ପୋଛି ପକାଇ ଶାନ୍ତ ଭାବରେ ଗେହ୍ଲା କରି କହିଲା - ''ଏତେ ରାଗ୍ ନା ରେ ବଛା । ସାବାସ୍ ବଛା ସାବାସ୍ । ''

ଏହାପରେ ବିଚରା ସାପ ଗୁଡେଇ ହୋଇ ଚୁପ୍‌ଚାପ୍ ଭୂଇଁରେ ବସିଗଲା । ନିଜର ବ୍ୟର୍ଥତା ତାକୁ ବିଦାରୁ ଥିଲା । ନିଜର ଲାଂଛିତ ଗର୍ବକୁ ଭିତରେ ପିଇ ଲୋକ ମାନଙ୍କ ମଝିରେ ହୀନମାନି ଭାବରେ ନିଜ ଲାଂଜରେ ମୁହଁ ମାଡ଼ି ପଡ଼ି ରହିଲା ।

ଜଣେ କହିଲା - ''କେଳା, ମନେ ହେଉଛି ତମେ ତାର ବିଷ ଦାନ୍ତକୁ ଭାଙ୍ଗି ଦେଇଛ ।''

କେଳା କହିଲା - ''ତମେ ତାକୁ ବିଶ୍ୱାସ କରନା ବାବୁ ଆମ ପାଖରେ ଜଡ଼ି ବୁଟି ଥାଏ ତ ।!''

ଏହା କହି ସେ ତା' ମୁଣାରୁ କ'ଣ ଟିକିଏ ବାହାର କରି କାମୁଡ଼ା ଜାଗାରେ ଘଷି ଦେଲା ।

ଆଉ ଜଣେ ପଚାରିଲା - ''ଇୟେ କ'ଣ ବହୁତ ବିଷାକ୍ତ ସାପ?''

କେଳା କହିଲା - ''ବାବୁ ୟା କାମୁଡ଼ାର ଔଷଦ ସାରା ଦୁନିଆରେ ନାହିଁ। ଭୟଙ୍କର ବିଷଧର ସାପ ବାବୁ ।''

ଲାଞ୍ଜରେ ମୁହଁ ମାଡ଼ି ପଡ଼ି ରହି ସାପ ସତେ ଅବା ନିଜକୁ ନିଜେ ଗିଳିବାକୁ ଚେଷ୍ଟା କରୁଥିଲା ।

ତୃତୀୟ ଲୋକ କହିଲା - ''କେଲା, ଯେ କ'ଣ ଏକଦମ ଚୁପ୍ ହେଇଗଲା? ଯାକୁ ଫେର୍ ଉଠାଅ ।''

କେଲା ତା' ତୁମ୍ବା ମୁନରେ ସାପର ଚେଷ୍ଟାହୀନ ଦେହକୁ କେଞ୍ଚିଲା ଓ ବାଡ଼େଇଲା । ସାପ ରାଗରେ ଥରିଗଲା । ମାତ୍ର ଉଠିଲା ନାହିଁ ଚୁପ୍ ଚାପ୍ ପଡ଼ି ରହିଲା ।

କେଲା ପୁଣି ତାକୁ ଆଘାତ କରୁ କରୁ ଡାକିଲା - ''ଉଠ୍ ବଚ୍ଚା, ଉଠ୍ ।''

ସାପର ଏତେ ରାଗ ହେଲା ଯେ ନିଜକୁ କାମୁଡ଼ି ପକାଇବାକୁ ଇଚ୍ଛା ହେଲା ।



କେଳା ପୁଣି ତା' ଫଣାରେ ହାତ ବାଢ଼େଇ ବାଢ଼େଇ ଗେହ୍ଲା କରି ଡାକିଲା - ''ଉଠ୍, ବଛା ଉଠ୍।''

ବିଚରା ବଛା କେତେବେଳ ଯାଏ ଆଉ ନ ଉଠି ରହନ୍ତା !! ସହିବାର ସବୁ ସୀମା ପାରି ହେଇଗଲା, ତେବେ ଯାଇ ସେ ଉଠିଲା। ଉଠି ସେଇମିତି ଫଣାକୁ ଚାରିଆଡ଼କୁ ବୁଲାଇଲା। ସେଇମିତି ଫଁ ଫଁ ନିଶ୍ୱାସ ଛାଡ଼ିଲା ଓ ଜିଭ ବାହାର କଲା। ସେଇମିତି ତା' ଦେହକୁ ସିଧା କରି ରଖିଲା। କ୍ରୋଧର ଅଭିନୟ ପୁଣି ସେ ପୂରାପୂରି ଭାବରେ କଲା। ସେ ଜାଣିଲା, ତାମସା ଦେଖିଲା ବାଲା ତା' ଠାରୁ ଏଇୟା ଚାହାନ୍ତି। ତାର ଆଉ ଉପାୟ ନାହିଁ।

ଲୋକମାନେ ଖୁବ୍ ଖୁସି ହେଲେ। ସାପ ତାଙ୍କ ମନରେ ଗଭୀର ପ୍ରଭାବ ପକାଇଲା। ସେମାନେ ବୁଝିଲେ ଯେ ନିଃସନ୍ଦେହରେ ଇୟେ ଅତ୍ୟନ୍ତ ବିଷାକ୍ତ ସାପ, ଏପରି ଏକ ମହାପୁରୁଷଙ୍କୁ ଦେଖିଲା ଭଳି ଲାଗିଲା, ଯାହାଙ୍କ ଗରିମାର ପ୍ରଭାବ ତାଙ୍କ ନିଜ ଉପରେ ପଡ଼ି ନାହିଁ। ସେଇଥିପାଇଁ ଅତି ସହଜରେ ସେମାନେ ତାର ବଡ଼ ପଣିଆକୁ ସ୍ୱୀକାର କରି ନେଲେ।

ସବୁ କଥା ଦେଖାଇ ସାରି ସାପ ପୁଣି ଦେହକୁ କୁଣ୍ଡଳୀ କରି ଲାଞ୍ଜୀରେ ମୁହଁ ଲୁଚାଇ ବସିଗଲା। ଏଥର ଆଉ ଜଣେ ବାବୁ ତା' ଚାଲି ଦେଖିବାକୁ ଚାହିଁଲେ। ଏଭଳି ବଡ଼ ଆଉ ଅସାଧାରଣ ସାପର ଚାଲିରେ ଏ ସମୟରେ କିଛି ବିଶେଷତ୍ୱ ଥିବ ବୋଲି ତାଙ୍କର

ମନେ ହେଲା ।

କେଲା କହିଲା - ''ଆଚ୍ଛା ବାବୁ'', ତୁମ୍ବା ଗୋଜରେ ସାପ ଦେହକୁ କେଞ୍ଚି କେଲା ଡାକିଲା - ''ଟିକିଏ ଚାଲିକରି ଦେଖ ମୋ' ରାଜା, ମୋ' ବାପ ପରା । ବାବୁଙ୍କୁ ଖୁସି କରିଦେ । ତୁ ବହୁତ ବଡ଼ ଇନାମ ପାଇବୁ ରେ ବଚ୍ଚା ।''

ବହୁତ ବଡ଼ ଇନାମର ଅର୍ଥ ସେ ଅଳ୍ପବୁଦ୍ଧି ସାପ ମୁଣ୍ଡରେ ବୋଧହୁଏ ପଶିଲା ନାହିଁ । କେଂଚାର ଆଘାତ ଖାଇ ମଧ୍ୟ ସତେ ଅବା ସତ୍ୟାଗ୍ରହ ପୂର୍ବକ ସେ ନିର୍ଜୀବ ଭଳି ପଡ଼ି ରହିଲା । କିଛି ସମୟ ପରେ ବାବୁଙ୍କୁ ଖୁସି କରିବାରେ କି ଲାଭ ସେ ଅବଶ୍ୟ ବୁଝି ପାରିଲା, ଏଥର ସେ କୁଣ୍ଡଳୀ ଖୋଲି ଖସିବା ଆରମ୍ଭ କଲା ।



କେଳା ତା' ଫଣା ଉପରେ ତୁମ୍ବାକୁ ଠୁକୁରାଇ କହିଲା - ''ବାବୁମାନଙ୍କୁ ସଲାମ କର ବଚ୍ଛା, ସଲାମ କର।''

ସାପ ଫଣା ତୋଳିଲା। ଏହିପରି କିଛିବାଟ ଯାଇ ସାପ ପୁଣି ଗୁଡ଼େଇ ହେବା ଆରମ୍ଭ ହେଲା। କେଳା ତାକୁ ସାବାସ୍ ଦେଉ ଦେଉ ଦୁଇ ହାତରେ ତୋଳି ଧରି ଲୋକଙ୍କ ଘେରରେ ବୁଲି ବୁଲି ପ୍ରତ୍ୟେକଙ୍କ ସାମନାରେ ଜୁଡ଼ା ହୋଇ କହି ଚାଲିଲା - ''ପ୍ରଭୁ ସଭିଙ୍କର ମଙ୍ଗଳ କରିବ। ପୁରୁଣା କବଟା ଖଣ୍ଡେ ମିଳିଯାଉ ବାବା। ପେଟକୁ ଗଣ୍ଡେ ଦାନା।''

ଘରକୁ ଫେରି, କେଳା ସାପକୁ ଯେତେବେଳେ ତା' ଘରେ ଛାଡ଼ି ଦେଲା, ସେଇ ଢ଼ାଙ୍କୁଣୀ ତଳୁ ସେଇ ଅନ୍ଧାର ଘର ଭିତରୁ



ସାପ ଆପଣାର ଅସ୍ତବ୍ୟସ୍ତ ହୋଇ ପଡ଼ିଥିବା କ୍ରୋଧକୁ ଢୋକି ହଜମ କରି କହିଲା - ''ହେ ଜଗଦୀଶ୍ୱର! ତୁ ମତେ ଭୟଙ୍କର ବିଷ ଦେଇଥିଲୁ, ମୁଁ ତାକୁ କୃତଜ୍ଞତାର ସହିତ ଗ୍ରହଣ କରି ସାରି ପୁଣି ମୋ' ଠାରୁ ତାକୁ ଫେରାଇ ନେବାକୁ ତତେ ବାଧ୍ୟ କଲି, ହେ ଈଶ୍ୱର, କ'ଣ ମୋର ଏଇ ଅକୃତଜ୍ଞତାର ଅପରାଧ ପାଇଁ ଏହି ଦଣ୍ଡ ଦେଲୁ ଯେ ମୋ' ଠାରୁ ମୋ' ତେଜ ମଧ୍ୟ ଛଡ଼ାଇ ନେଲୁ? ହେ ପରମାତ୍ମା ! କ'ଣ ବିଷ ହିଁ ମୋର ତେଜ ଥିଲା? କ'ଣ ବିଷକୁ ତ୍ୟାଗ କରିବାର ଇଛା ବି ଆମେ କରି ପାରିବୁ ନାହିଁ? ହେ ପରମାତ୍ମା?''

ଏକଥାରୁ ଜଣାଗଲା ଯେ ବାଣୀରେ ତ ପରମାତ୍ମା ସର୍ବଦୈବ ମୌନ ହି ରହନ୍ତି। କାର୍ଯ୍ୟରେ ହିଁ ପ୍ରକଟ ହୁଅନ୍ତି। ଜଗତର ଘଟଣା ହି ପରମାତ୍ମାଙ୍କର ବାଣୀ!

ଏବଂ କାର୍ଯ୍ୟରୁ ଏହା ପ୍ରମାଣିତ ହେଉଛି ଯେ ସେ ସାପ ଯୋଗୁଁ କେଳାର ନିତିଦିନର ପେଟ ପୋଷଣା ସହଜ ହୋଇଗଲା। ସାପୁଆ କେଳା ଓ ତା' ସ୍ତ୍ରୀ ଭଗବାନଙ୍କୁ ଧନ୍ୟବାଦ ଦେଇ କହନ୍ତି - ''ପ୍ରଭୁ, ତୁ ହିଁ ସଭିଙ୍କର ପାଳନ ଓ ପୋଷଣା ହାରୀ।''

# ଚାଷୀ ର ଭୂଲ

ଚାଷୀ ଭାଇ ଦିନେ ପାହାନ୍ତା ପହରୁ ହଳ ବଳଦ ନେଇ ଆପଣା କ୍ଷେତକୁ ବାହାରିଲା । ସାଙ୍ଗରେ ଦି'ପଟ ରୁଟି ନେଇଥାଏ । ବିଲରେ



ପହଞ୍ଚି ରୁଟି ଦି'ପଟକୁ ଗାମୁଛା ଖଣ୍ଡକରେ ଗୁଡ଼ାଇ, ବୁଦା ତଳେ ରଖି, ହଳ ଜୋଚି କାମରେ ଲାଗିଲା। ଦ୍ୱିପହର ଯାଏ ହଳ ବୁଲାଇ ବଳଦ ଥକା ହେଲା ବେଳକୁ ତାକୁ ବି ଭୋକ ଲାଗିଲା। ବଳଦକୁ ଚରିବାକୁ ଛାଡ଼ିଦେଇ, ହଳ ରଖି ସେ ଗାମୁଛାରେ ଗୁଡ଼େଇ ରଖିଥିବା ରୁଟି ଆଣିବାକୁ ଯାଇ ଦେଖେ - ରୁଟି ଦି'ପଟ ଗଲା



କୁଆଡ଼େ? ଗାମୁଛାକୁ ଏପାଖ ସେପାଖ କରି ବାରଂବାର ଝାଡ଼ିଲା, ଆଖପାଖ ଅଣ୍ଡାଳିଲା। ରୁଟି ଥିଲେ ସିନା ପା'ନ୍ତା ! ଚାଷୀ ବିଚରା କିଛି ବୁଝି ପାରିଲା ନାହିଁ।

ସେ ଭାବିଲା ବଡ଼ ଆଚମ୍ବିତ କଥା! ମୁଁ ଦେଖି ପାରି ନାହିଁ ସିନା, ନିଶ୍ଚୟ କେହି ଆସି ରୁଟି ଦି'ପଟକୁ ନେଇ ଯାଇଛି।





ଅସଲେ ପାପ-ଦାନବର ଚର ସେଠିକି ଆସି, ଚାଷୀ ପଛମୁହାଁ ହେଇ କାମରେ ଲାଗିଥିବା ବେଳେ ରୁଟି ଚୋରି କରି ନେଇଥିଲା । ସେ ଏବେଯାଏ ବି ବୁଦା ପଛରେ ଲୁଚି ବସିଥିଲା । ଭାବିଥିଲା ଚାଷୀଟି ଭୋକରେ ଆଉଟୁ ପାଉଟୁ ହେଇ ରାଗିବ, ଗାଳି ଗୁଲଜ କରିବ । ରୁଟି ବିନା ଚାଷୀଟିର ମନରେ ଟିକିଏ ଦୁଃଖ ହେଲା ସତ, ତେବେ ଭାବିଲା ଏବେ ଆଉ କ'ଣ କରା ଯାଇ ପାରିବ? ଦି'ପଟ ରୁଟି ବିନା ତ ମୁଁ ଆଉ ଭୋକରେ ମରିଯିବି ନାହିଁ? ଯିଏ ନେଇଛି,



ତାର ନିହାତି ଦରକାର ହେବାରୁ ତ ନେଇଛି । ହଉ, ତାର ମଙ୍ଗଳ ହେଉ ।

ଏୟା ଭାବି ସେ ପାଖ କୁଅରୁ ପେଟେ ପାଣି ପିଇ ଟିକିଏ ଗଡ଼ି ପଡ଼ିଲା । ଟିକେ ବିଶ୍ରାମ କରି ପୁଣି ସେ ବଳଦ ଜୋଚି ହଳ ଚଲେଇବାରେ ଲାଗିଗଲା ।

ଏ କଥା ଦେଖି ଚର ମନଟି ଫିକା ପଡ଼ିଗଲା । ସେ ଭାବିଥିଲା ଚାଷୀଟିର ମନ ଖରାପ ହେବ ଓ ସେ ସଂପାକଟା କରିବ କିନ୍ତୁ

ତା' ମୁହଁରୁ ତ କାହାରି ପାଇଁ ପଦେ ହେଲେ ଖରାପ କଥା ବାହାରିଲା ନାହିଁ।

ସେ ଯାଇ ତା' ମାଲିକ ପାପ-ଦାନବକୁ ଏକଥା ଜଣେଇଲା। କହିଲା ଯେ ମୁଁ ତ ତା' ପେଟର ଦାନା ଗଣ୍ଡାକ ଚୋରେଇ ନେଲି। କିନ୍ତୁ ସେ ଭଲ ମଣିଷଟି ଗାଳି ଦେବା ତ ଦୂରର କଥା, ଓଲଟି କହିଲା ଯେ ହଉ ଯିଏ ନେଇଛି ତାର ମଙ୍ଗଳ ହେଉ। ଏକଥା ଶୁଣି ପାପ-ଦାନବ ଭାରି ବିଗିଡ଼ିଲା। କହିଲା ଯେ ଇଏ ତ ଅତି ଲଜ୍ଜାର କଥା - ମଣିଷ ତୋ' ଠାରୁ ବଳେଇ ଯିବେ ! ତୁ ନିଜ କାମ ଜାଣି ନାହୁଁ। ଯଦି ଚାଷୀ ଆଉ ତାଙ୍କ ଘରଣୀ ମାନେ ଏମିତି ଭଲ ମଣିଷ ହୁଅନ୍ତି, ତେବେ ଆମ ଦାନବ କୁଳର କି ଦଶା ହେବ, କହିଲୁ? ବୁଝି ପାରୁଛୁ? ଜଲ୍‌ଦି ଫେରି ଯା, ଆଉ ବିଗାଡ଼ିଥିବା କାମଟିକୁ ଶୀଘ୍ର ସଜାଡ଼ି ନେ। ତିନି ବର୍ଷ ଭିତରେ ତୁ ଯଦି ଚାଷୀର ସତତାକୁ ତୋ' ଅକ୍ତିଆରକୁ ନ ଆଣିଛୁ ତ ତତେ ବୈତରଣୀରେ ଫିଙ୍ଗି ଦିଆଯିବ। ଶୁଣିଲୁ? ଏବେ ଯା !

ଚର ବିଚରା ମାଲିକର ଧମକରେ ତ୍ରସ୍ତ ହେଇ ମର୍ତ୍ତକୁ ଫେରି ଆସିଲା। ଭାବିଲା - କ'ଣ କଲେ ମୋ' କାମ ସଫଳ ହେବ। ଅନେକ ଭାବି ଚିନ୍ତି ଶେଷରେ ସେ ଗୋଟିଏ ବୁଦ୍ଧି ପାଞ୍ଚିଲା।

ସେ ଯାଇ ସେ ଚାଷୀ ଘରେ ହଳିଆ ଭାବରେ ଚାକିରୀ କଲା। ପହିଲି ବର୍ଷ ସେ ଚାଷୀକୁ କାଦୁଆ ଖାଲ ଜମିରେ ଫସଲ ବୁଣିବାକୁ

କହିଲା । ଚାଷୀ ତା' କଥା ମାନି ସେୟା କଲା । ବିଧିର ବିଧାନ ଏପରି ଯେ ସେ ବର୍ଷ ମରୁଡ଼ି ହେଲା । ସମସ୍ତଙ୍କ ଫସଲ ଖରାରେ ନଷ୍ଟ ହୋଇଗଲା । କିନ୍ତୁ ଏ ଚାଷୀର ଫସଲ ଖୁବ୍ ଭଲ ହେଲା, ଗଛ ବହଳ ଓ ଦାନା ବି ବଡ଼ ହେଲା ।

ଅମଳ କରି ଘରକୁ ଏତେ ଫସଲ ଆଣିଲା ଯେ ବରଷକ ହେଇ ଆଉରି ବହକି ଗଲା ।



ଆଗଲା ବର୍ଷ ଚର ପରାମର୍ଶ ଦେଲା ହଉ ଏଥର ଢ଼ିପ ଜମିରେ ବୁଣିଲେ ଭଲ ହେବ। ତା' କଥା ମାନି ଚାଷୀ ସେୟା କଲା। ସେ ବର୍ଷ କାହିଁରେ କ'ଣ ବର୍ଷା ହେଲା, ଅନ୍ୟ ମାନଙ୍କର ଫସଲ ନଇଁଗଲା, ପଡ଼ିଗଲା, କେଣ୍ଡାରେ ଦାନା ବି ରହିଲା ନାହିଁ। କିନ୍ତୁ ଚରର ମାଲିକ ଢ଼ିପ ଜମି ଫସଲ ସତେ ଅବା ବାଳରେ ଝୁମୁକା ବାନ୍ଧି ଲହରୀ ଆରବର୍ଷ ଠାରୁ ଆହୁରି ଅଧିକ ଫସଲ ହେଲା। ତା' ଅମାର ଏତେ ଠାସି ଠୁସି ହେଇ ଭରିଗଲା ଯେ ସେ ନିଜେ ବୁଝିପାରିଲା ନାହିଁ କରିବ କ'ଣ?

ଠିକ୍ ଏତିକି ବେଳେ ସେ ଚର ତାକୁ ଶିଖାଇଲା କିମିତି ଚାଉଳରୁ ମଦ ତିଆରି କରାଯାଇ ପାରେ ଓ ମଦ ଗୋଟିଏ ଇମିତି ଜିନିଷ ଯେ ଆଉ କ'ଣ କହିବି! ତାର ତୁଳନା ଆଉ କାହାରି ସହିତ ହୋଇ ପାରିବ ନାହିଁ।

ଚାଷୀ ତାହାହିଁ କଲା। ଖୁବ୍ କଡ଼ା ମଦ ତିଆରି କଲା। ନିଜେ ପିଇଲା ଓ ବାନ୍ଧବ ମାନଙ୍କୁ ପିଆଇଲା। ଏତକ କରି ଦେଇ ସେ ଚର ତା' ନିଜ ମାଲିକ ଦାନବ ପାଖକୁ ଫେରି ଆସିଲା। କହିଲା - ''ମାଲିକ, ମୁଁ ସଫଳ ହେଇଛି ଓ ଆପଣଙ୍କ କାମ ପୂରା ହୋଇଛି।''

ଦାନବ କହିଲା, ''ଆଚ୍ଛା, ହଉ ମୁଁ ନିଜେ ଯାଇ ଦେଖେଁ, ତୁ କ'ଣ କରିଛୁ।'' ଦାନବ ଓ ଚର ଦିହେଁ ଚାଷୀ ଘରକୁ ଆସିଲେ।

ଦେଖନ୍ତି ତ ସେଠି ସାଇ ପଡ଼ିଶା ଯେତେକ ଲୋକ ଆମନ୍ତ୍ରିତ ହୋଇ ଆସିଛନ୍ତି ଆଉ ମଦ-ଭୋଜି ଚାଲିଛି। ଗୋଟାଏ ମଉଚ୍ଛବ ଜାଣ! ଚାଷୀର ସ୍ତ୍ରୀ ସାକୀ ସାଜି ଅତିଥିଙ୍କୁ ମଦ ପରଷୁଛି।



ସେତିକି ବେଳକୁ କାହାରି ଦେହରେ ଧକ୍କା ଲାଗି ସ୍ତ୍ରୀ ଟଳମଳ ହେବାରୁ ତା' ହାତରୁ ମଦ ଯାକ ଢଳିଗଲା। ତହୁଁ ତା' ସ୍ୱାମୀ ରାଗି ଯାଇ କହିଲା, ''ମୂର୍ଖ, ତୁ କ'ଣ କିଛି ଜାଣି ପାରୁ ନାହୁଁ



କି? ଏ ଜିନିଷକୁ ତୁ କ'ଣ ଯାହା ତାହା ଜିନିଷ ମନେ କରିଛୁ? ଏଣେ ତେଣେ ବୁହାଇ ଦେଉଛି? ନିଲଠା, ବେହିଆଣୀ!''

ଚର ତା' ମାଲିକକୁ ଧୀରେ କହୁଣୀ ମାରି ଦେଖାଇ ଦେଲା ଯେ ଦେଖ ଯେ ସେଇ ମଣିଷ ଯିଏ ତା' ମୁହଁରୁ ଗ୍ରାସ ଛଡ଼େଇ ନେବା ପରେ ବି ରାଗି ନଥିଲା। ଚାଷୀ ତା' ସ୍ତ୍ରୀ ଠାରୁ ଛଡ଼ାଇ ନେଇ, ତା' ଉପରେ ଗରଗର ହେଉ ହେଉ ଗିଲାସ ଭରି ଭରି ଲୋକଙ୍କୁ ଦେବାକୁ ଲାଗିଲା। ଏତିକି ବେଳେ ଜଣେ ଗରିବ ମଜୁରିଆ କାମରୁ ଫେରିବା ବାଟରେ ସେଠି ପହଞ୍ଚିଗଲା। ତାକୁ ସେ ଭୋଜୀକି ଡକା ହୋଇ ନଥିଲା। ସେ ସମସ୍ତଙ୍କୁ ହାତ ଯୋଡ଼ି ନମସ୍କାର କରୁ କରୁ ସେଠି ଆସି ବସି ଗଲା। ଥକା, ମାନ୍ଦା ହେଇ ଆସିଥିଲା। ସମସ୍ତେ ପିଉଛନ୍ତି ଦେଖି ତାର ବି ମନ ଡାକିଲା ମିଳିଲେ ମୁନ୍ଦାଏ ପିଅନ୍ତା, ଆଶାରେ ବସି ରହିଲା। ତା' ପାଟିରୁ ପାଣି ମରିଗଲା, କିନ୍ତୁ ଗୃହସ୍ଥ ଚାଷୀ ତାକୁ ପଚାରିଲା ବି ନାହିଁ। ଓଲଟି କହିଲା ଯେ ଇମିତି ଯିଏ ପାରେ ସିଏ ଆସି ପହଞ୍ଚିଗଲେ ମୁଁ କାହୁଁ ଆଣି ଏତେ ପିଆଇବି, କହିଲ ଭଲା?

ଏସବୁ ଦେଖି ଦାନବ ଭାରି ପ୍ରସନ୍ନ ହେଲା। କିନ୍ତୁ ତା' ଚର କହିଲା ଯେ ଏତିକି କ'ଣ ଦେଖୁଛନ୍ତି! ଆଉରି ଦେଖିବେ। କେତେ କ'ଣ ବାକୀ ଅଛି କେଜାଣି!

ଘର ଲୋକେ କ'ଣ, ବାହାର ଲୋକେ କ'ଣ ସମସ୍ତେ ପରସ୍ପରକୁ ପରଷିଲେ । ପହିଲି ପାଳି ପିଇ ଦେଇ ପରସ୍ପରକୁ ଭାରି ଚିକ୍କଣ ଚାକଣ ମନ ରଖା କଥାମାନ କହିବାକୁ ଲାଗିଲେ । ସେ ସବୁ ବନ୍ଧୁତ୍ୱର କଥା ଥିଲା ।



ଦାନବ ଶୁଣି ଶୁଣି ଭାରି ଖୁସି ହେଲା। ତା' ଚରର ପିଠି ଥାପୁଡ଼େଇ ପ୍ରଶଂସା କରି କହିଲା ଯେ ମଦ ପିଇ ଏମାନେ କେମିତି ଚତୁର ବିଲୁଆ ଭଳି କପଟୀ ହେଇ ଯାଇଛନ୍ତି! ଏ ଚିଜର ଯଦି



ଏଭଳି ଗୁଣ ଯେ ଲୋକେ ପରସ୍ପରକୁ ଠକିବାରେ ଲାଗିବେ, ତେବେ ଆଉ କ'ଣ? ଆମର ଜିତାପଟ ତ ନିଶ୍ଚୟ ହେବ!

ଚର କହିଲା ଯେ ଆପଣ ଆଗକୁ ଦେଖିଯା'ନ୍ତୁ ନା! ଏବେ ତ ସେମାନେ ବିଲୁଆ ଭଳି ପରସ୍ପର ସାମନାରେ ଲାଙ୍ଗୁଡ଼ ହଲାଉଛନ୍ତି ଆଉ ପ୍ରୀତିର ଚେର ବାନ୍ଧୁଛନ୍ତି। ଆଉ ଥରେ ପିଇ ଦେଲେ ତ ହେଟା ବାଘ ବନିଯିବେ।



ଆଉ ଘେରାଏ ପିଆ ଚାଲିଲା। ତା'ପରେ କଥାବାର୍ତ୍ତା ବେଢଙ୍ଗିଆ ହେବା ଆରମ୍ଭ କଲା। ଚିକ୍କଣ ମିଠା କଥା ବଦଳରେ ଏବେ ପରସ୍ପରକୁ ଦୋଷ ଦେଇ ଗାଳି ଦେବା ଆରମ୍ଭ କଲେ। ବକା ବକି ହେଇ ମାର୍‌ପିଟ୍ ଯାଏ କଥା ଉଠିଗଲା। ଦେଖୁ ଦେଖୁ ସମସ୍ତେ ନିଜ ନିଜ ଭିତରେ ଝଗଡ଼ା ଆରମ୍ଭ କରିଦେଲେ। ଗୃହସ୍ଥ ଓ ଅତିଥିଙ୍କ ଭିତରେ ପାର୍ଥକ୍ୟ ରହିଲା ନାହିଁ, ଗୃହସ୍ଥ ମଧ୍ୟ ସେଇ ଏକା ଦଶା ହେବାର ଦେଖାଗଲା।

ଏ ସବୁ ଦେଖି ଦାନବ ଅତି ପ୍ରସନ୍ନ ହେଲା। ଚରକୁ କହିଲା ଯେ ତୁ ଏକଦମ୍ ଏକ ନମ୍ବର କାମ କରି ଦେଇଛୁ। ମୁଁ ତୋ ଉପରେ ଭାରି ଖୁସି ହୋଇଛି।

ଚର କହିଲା, ଦେଖନ୍ତୁ, ଦେଖନ୍ତୁ ଆଉରି ବି ବାକି ଅଛି। ଆଗକୁ ୟା ଠାରୁ ବଳି ଦୃଶ୍ୟ ବି ଦେଖିବେ। ଏବେ ଭୋକିଲା ହେଟା ଭଳି କଜିଆ କରୁଛନ୍ତି ଆଉ ଥରେ ପିଇଦେଲେ ଘୁଷୁରି ଭଳି ହେଇଯିବେ। ତୃତୀୟ ଥର ପିଆ ଚାଲିଲା। ତା'ପରେ ସେମାନଙ୍କ ଭିତରେ ଆଉ ଘୁଷୁରି ଭିତରେ କିଛି ପ୍ରଭେଦ ରହିଲା ନାହିଁ। କ୍ରୋଧ ଜ୍ଞାନ ହରାଇ ସେମାନେ ଘୁଷୁରି ଭଳି ବୋବାଳିଲେ। କେହି କାହାରି କଥା ଶୁଣିବା ଅବସ୍ଥାରେ ନଥିଲେ। ନିଜକୁ ସମ୍ଭାଳି ନ ପାରି ପରସ୍ପର ଉପରେ ପଡ଼ିବାକୁ ଲାଗିଲେ। ତା'ପରେ ମଉଚ୍ଛବ ଆରମ୍ଭ ହେଲା। ଲୋକେ ଟଳମଳ ଅବସ୍ଥାରେ, ପଡ଼ି

ଉଠି, ଜଣ ଜଣ କରି ଯେଝା ବାଟରେ ଯିବାକୁ ଲାଗିଲେ । ଚରର ମାଲିକ ଚାଷୀ ଅତିଥିଙ୍କୁ ବିଦା କରି ବାହାରକୁ ଆସି ମୁହଁ ମାଡ଼ି କାଦୁଅରେ ପଡ଼ିଗଲା । ଘୁଷୁରି ଭଳି ଗୋଡ଼ରୁ ମୁଣ୍ଡ ଯାଏ ଲଟର ପଟର ହେଇ ପଡ଼ି ମନକୁ ମନ ଭଡ଼ର ଭଡ଼ର ହେଉଥାଏ ।



ପାପ-ଦାନବ ଏସବୁ ଦେଖି ଚର ଉପରେ ଖୁବ୍ ସନ୍ତୁଷ୍ଟ ହେଲା। କହିଲା, ''ସାବାସ୍, ତୁ ଖୁବ୍ କରି ଦେଖାଇ ଦେଲୁ। ତୋର ପ୍ରଥମ ଦୋଷ ପୂରା କଟିଗଲା। ଆଚ୍ଛା, ମତେ ଏବେ କହିଲୁ ତୁ ସେ ଜିନିଷ ତିଆରି କଲୁ କେମିତି? ପ୍ରଥମେ ତୁ ସେଥିରେ ନିଶ୍ଚୟ ବିଲୁଆ ରକ୍ତ ପକାଇଥିବୁ, ଯାହା ଫଳରେ ତାକୁ ପିଇବା ବାଲାଙ୍କ ଭିତରେ ବିଲୁଆ ଭଳି କପଟାଚାର ଆସିଗଲା। ପୁଣି ବୋଧହୁଏ ହେଟା ରକ୍ତ ମିଶାଇଥିବୁ, ସେଇଥିପାଇଁ ହେଟା ଭଳି ଖିଙ୍କାରି ହେଲେ। ଶେଷରେ ନିଶ୍ଚୟ ଘୁଷୁରି ରକ୍ତ ଦେଇଥିବୁ, ଯାହାପାଇଁ କି ଘୁଷୁରି ଭଳି ହୋଇଗଲେ।'' - ଚର କହିଲା ଯେ ନା, ନା, ମତେ ସେ ସବୁ କିଛି କରିବାକୁ ପଡ଼ିନାହିଁ। ମୁଁ ଖାଲି ଏତିକି କଲି, ଯେମିତି ଚାଷୀ ପାଖରେ ତା' ଚାହିଦାରୁ ଅଧିକ ଫସଲ ହେଇଯିବ। ପଶୁର ରକ୍ତ ତ ମଣିଷ ଭିତରେ ରହିଛି,ଯେତିକି ଦରକାର ସେତିକି ଅନ୍ନ ତା' ପାଖରେ ଥିବା ଯାଏ ତାର ପ୍ରଭାବ ଦବି ରହିଥାଏ। ଏ ଚାଷୀର ଅବସ୍ଥା ସେୟା ଥିଲା। ଆଗ ମୁହଁର ଅନ୍ନ ଛଡ଼ାଇ ନେଲେ ମଧ୍ୟ ତା' ମନ ମଇଳା ହେଇ ନଥିଲା, କିନ୍ତୁ ଯେତେବେଳେ ତା' ପାଖରେ ପ୍ରୟୋଜନରୁ ଅଧିକ ହୋଇଗଲା ତ ତା' ଭିତରେ ମଉଜ-ମଜଲିସ୍ କରିବାର ଇଚ୍ଛା ଜାଗିଲା। ଠିକ୍ ସେତିକି ବେଳେ ମୁଁ ତାକୁ ମଉଜର ବାଟ ବତାଇ ଦେଲି, ସେ ହେଉଛି ମଦ। ତା' ଲାଗି ଈଶ୍ୱର ଦେଇଥିବା ଜିନିଷରୁ କାଢ଼ି ନେଇ

ନିଜର ମଉଜ ପାଇଁ ସେ ଯେତେବେଳେ ମଦ ତିଆରି କଲା, ସେତେବେଳେ ତା' ଭିତରୁ ବିଲୁଆ, ହେଟା ଓ ଘୁଷୁରିର ପ୍ରକୃତି ଗୋଟି ଗୋଟି ହେଇ ଫୁଟି ଉଠିଲା । ଯଦି ମଣିଷ ସବୁବେଳେ ମଦ ପିଉଥିବ, ତେବେ ପଶୁ ହେଇ ରହିଯିବ ଏଥିରେ ସନ୍ଦେହ



ନାହିଁ ଦାନବ୍ ଚରର ପିଠି ଥାପୁଡ଼େଇଲା । ପ୍ରଥମ ଭୂଲ ପାଇଁ ତାକୁ କ୍ଷମା କରିଦେଲା ଓ ତା' ବାହାଦୁରୀ ପାଇଁ ତାକୁ ଚାକିରୀର ଉପର ପାହ୍ୟାରେ ବହାଲ କରିଦେଲା ।



